# ବେଢ଼ାଭୁଲା ।
# ଓ
# ବେଢ଼ାପରିକ୍ରମା ।

ଶ୍ରୀ ଗୋବିନ୍ଦ ରଥଙ୍କଦ୍ୱାରା

ଅରୁଣୋଦୟଯନ୍ତ୍ରାଳୟରେ

ପ୍ରଥମବାର

ପ୍ରକାଶିତ ।

---

CUTTACK.

Printed at the Arunodoy Press

1895.

ମୂଲ୍ୟ ଦୁଇପଇସା ।

# ବେଢ଼ାବୁଲା ।

—:❋:—

ଯୀଭାଙ୍କ ଶ୍ରୀକରଧର ଚଢଲେ ବେଢ଼ାକୁ ।
ଚଢ଼ାଇ ଦିଅନ୍ତି ବେଢ଼ା ଦେବତାମାନଙ୍କୁ ,
ଶ୍ରଦ୍ଧା ଧନ ରେ ।
ଅନନ୍ତ ଶୟନ ଭଗବାନରେ । ୧ ।
ଦାରୁବ୍ରହ୍ମ ମୂରତି ଏ ଦେଖ ମହାପତି ।
ପତିତପାବନବାନା ଏଥୁ ବହୁଛନ୍ତି ।
ଶ୍ରଦ୍ଧା ମିତ ଗୋ ।
ପତିତପାବନ ଜଗନ୍ନାଥ ଗୋ । ୨ ।
ଦେଖ ଦେଖ ସଖି ଅରେ ବାଞ୍ଛାକଳ୍ପବଟ ।
ଚତ୍ରେ ସ୍ୱୟମରଣୀ କଲେ ଫିଟଇ ସଙ୍କଟ ।
କୃଷ୍ଣ ରୂପ ଗୋ ।
ଦେବସଭା ମୁକ୍ତିମଣ୍ଡପ ଗୋ । ୩ ।
ବେଢ଼ାକାଳିକାଙ୍କୁ ଦେଖ ବେଢ଼ା ଲାଗିଛନ୍ତି ।
ନୟନ ଭୁଲଇ ମାଢ଼ ଲଗଇ ଶୁଦ୍ଧାନ୍ତି ।

ନାମ କାଳୀ ଗୋ ।
ଗଳାକୁ ଶୋହୁଛି ମୁଣ୍ଡମାଳୀ ଗୋ । ୪ ।
ଦକ୍ଷିଣ ଦୁଆରେ ଦେଖ ବଢ଼େ ଗଣପତି ।
ମନେ ସୁମରଣା କଲେ ଖଣ୍ଡେ ନାହିଁ ଧାତି ।
ବଦ୍ଧରଙ୍ଗ ଗୋ ।
ଏସ୍ଥଠାରେ ଭାବ ଚତୁର୍ଭୁଜ ଗୋ । ୫ ।
ନୃସିଂହ ମୂରତି ଦେଖ ମହା ଭୟଙ୍କର ।
ହିରଣ୍ୟ ଅସୁର ବିଦାରଣ ଚକ୍ରଧର ।
କ୍ଷେତ୍ରିସୁତା ଗୋ ।
ଦେଖ ଏ କମଳା ଜଗନ୍ନିତା ଗୋ । ୬ ।
କଟକ୍ର ମନ୍ଦର ସଖି ଦେଖ ବୃନ୍ଦାବନ ।
ବାହୁଙ୍ଖ ଚରଣଭକ୍ତି ଯଶୋଦାନନ୍ଦନ ।
ଶୁର୍ଦ୍ଧା ଭାଳା ରେ ।
କୃଷ୍ଣ ବାଳକାଳର ଏ ଲୀଳା ରେ । ୭ ।
ସୁନ୍ଦରମୂରତି ସମ କୃଷ୍ଣ ବେଳଖଲ ।
ଗୋପରେ ଏ ଲୁଚିଥିଲେ କଂସ ଭୟ ପାଇ ।
ଯାହାଙ୍କୁ ଦେଖ ଗୋ ।
ଏହାଟି ଫେଡ଼ିବେ ଆମ୍ଭ ଦୁଃଖ ଗୋ । ୮ ।

ସିଦ୍ଧଦାତା ଗଣେଶଙ୍କୁ ଦେଖ ଅଗରେ ଧନ ।
ଏହୁଟି ଅଛନ୍ତି ଅମ୍ଭ ପାର୍ବତୀନନ୍ଦନ ।
          ଦେଖ ମୂଷା ଗୋ ।
ପୂର୍ବରେ ଏ କହିଥିଲେ ଊଷା ଗୋ । ୯ ।
ପଶ୍ଚିମଦୁଆରେ ଦେଖ ଅଞ୍ଜନାଙ୍କ ସୁତ ।
ନିର୍ମଳ କରଣ ଗୃହେଁ ଜନକଦୁହିତ ।
          ଶୁଭ୍ରକେଶୀ ଗୋ ।
ସବୁ କଷ୍ଟ ଗଲା ଏଥି ଆସି ଗୋ । ୧୦ ।
ଦଧିଉଦରଣୀ ଦେଖ ଅପୂର୍ବମୋହିନୀ ।
ବୀଣାଯନ୍ତ୍ର କରେ ଧରି ମୋହୁଛି ଅବନୀ ।
          ପ୍ରାଣମଣି ଗୋ ।
ଅଛନ୍ତି ବ୍ରହ୍ମାର ଏ ଦୁଲଣୀ ଗୋ । ୧୧ ।
ଏ ପୁରରେ ଶ୍ରୀଦେବୀଙ୍କ ଅଟେ ଅଧିକାର ।
ଅଯୋଧ୍ୟାକୁ ଗଲେ ତୁ କହିବୁ ସମାଚାର ।
          ପ୍ରାଣସଖି ଗୋ ।
ସକଳ ଦେବତା ଠାବ ଦେଖି ଗୋ ! ୧୨ ।
ଘୃଷ୍ଟୁରବଲ୍ଲଭ ସଖି କର ଗୋ ଦର୍ଶନ ।
ବଳି ଯଜ୍ଞକାଳେ ଦାନ ମାଗିଲେ ବାମନ ।

କୁନ୍ଦଦନ୍ତ ଗୋ ।
ଦେଖ ଏ ଦେଉଳେ ଭଗଂବତୀ ଗୋ । ୧୩ ।
ନର୍ବିଁକାର ବଲ୍ଲଭଙ୍କୁ ଦେଖ ଅରେ ପ୍ରିୟ ।
ନରନ୍ତରେ ପାଦ ଯୋଡ଼ି ହୋଇଛନ୍ତି ଠିଆ ।
ଦେଖ ଅସି ଗୋ ।
ଏ ଅଟନ୍ତି ବଇକୁଣ୍ଠବାସୀ ଗୋ । ୧୪ ।
ଦେଖ ଏ କାହକା ଏ ଗୋ ସିଦ୍ଧ ଠାକୁରାଣୀ
ସିଂହର ପିଠିରେ ବସି କରନ୍ତି ଭ୍ରମଣି ।
ଆଦ୍ୟମାତା ଗୋ ।
ମଂଗଳପୁର ମାଉ ଜଗକ୍ଷିତା ଗୋ । ୧୫ ।
ଉତ୍ତରଦୁଆରେ ଦେଖ ବସେ ଉତ୍ତରାଣୀ ।
ମହାରାଣୀ ପାଣ୍ଡବଙ୍କ ବଂଶ ରକ୍ଷାଧଣୀ ।
ମୂନାକୂପେ ଗୋ ।
ମ୍ନାଦାନ କରନ୍ତି ଧନରୂପେ ଗୋ । ୧୬ ।
ଐଶାନ୍ୟନାଥଙ୍କୁ ଦେଖ ଅଗୋ ମହାଯଢ ।
ବଭୂଢଭୂଷଣ ଶିବ ବକଳ ପିନ୍ଧନ୍ତି ।
ଯୋଗଧ୍ୟାନେ ଗୋ ।
ପ୍ରାଣିଙ୍କର ମଙ୍ଗଳ ବଧାନେ ଗୋ । ୧୭ ।

ଦେଖ ଏ ଶଙ୍ଖର କୋଳେ ବଜ୍ରଯେ ପାର୍ବଣି ।
ଦୁଃଖୀ ରଙ୍କିଙ୍କର ଏତ କଷ୍ଟ ଉଦ୍ଧାରନ୍ତି ।
ଚନ୍ଦ୍ରମୁଖି ଗୋ ।
ସବୁ ଦୁଃଖ ଗଲା ଯାଙ୍କୁ ଦେଖି ଗୋ । ୧୮ ।
କୋଇଲିବୈକୁଣ୍ଠ ଦେଖ ଜନକକୁମାରୀ ।
ମାଧବୀର ଲତା ଏତ ବଇକୁଣ୍ଠ ପୁରୀ ।
ଯଜ୍ଞସ୍ଥାନ ଗୋ ।
ଏହୁଟି ପ୍ରଭୁଙ୍କ ନିଜ ଧାମ ଗୋ । ୧୯ ।
ନୀଳମାଧବଙ୍କୁ ଗୃହେଁ ପୂର୍ବର ଦେବତା ।
ସବୁ ଦେବତାଙ୍କ ପରେ ଅଟନ୍ତି କରତା ।
ମଇଥିଳ ଗୋ ।
ବ୍ରହ୍ମାଣ୍ଡେ ଅଟନ୍ତି ଅଧିକାରୀ ଗୋ । ୨୦ ।
ବଚିତ୍ର ମଣ୍ଡପ ଦେଖ ମନ୍ଦା ଶୋଭାକର ।
ଜନାର୍ଦ୍ଦନ ଦ୍ୱାରେ ବସେ କଲେ ଚକ୍ରଧର ।
ସିଂହଦ୍ୱାରେ ଗୋ ।
ମହୀ ଉତ୍କଳର ଜନପୁରରେ ଗୋ । ୨୧ ।
ଦେଉଳ ଶିଖରୁ ଗୃହେଁ ପତିତ ପାବନ ।
ଅନେଶ୍ୱର କୋଟି ବାନା ଉଡ଼େ ଘନ ଘନ ।

ସୀତା ଦେଖି ଗୋ ।
ହରଷ ହୋଇଲେ ଚନ୍ଦ୍ରମୁଖି ଗୋ । ୨୨ ।
ଏତେ ଦେଖିକରି ବଡ଼ ଦେଉଳେ ପଶିଲେ ।
ଗରୁଡ଼ ପଛରେ ଛନ ଦାରୁଙ୍କୁ ଦେଖିଲେ ।
ଛନଜଣ ଗୋ ।
ବସିଛନ୍ତି ରତ୍ନସିଂହାସନ ଗୋ । ୨୩ ।
ଦେଖ ଦେଖ ସଖି ଅରେ ମାଣିକା ଗୌଡୁଣୀ ।
ରାମ ଗୋବନ୍ଦଙ୍କୁ ଦେଲା ଯେ ଦଧି ଲବଣି ।
ଏହା ଠାଣି ଗୋ ।
ଅଗ୍ରରୁବ ମୟୂର ଚନ୍ଦ୍ରାଣି ଗୋ । ୨୪ ।
ବାଳମୁକୁନ୍ଦଙ୍କୁ ଏଥି କର ଗୋ ଦର୍ଶନ ।
ବ୍ରହ୍ମାଣ୍ଡ ପ୍ରଳୟ କାଳେ ଗ୍ରସୁଥିଲେ ପୁଣ ।
ଯାଙ୍କୁ ଦେଖି ଗୋ ।
ସଫଳ ହୋଇଲା ଆମ୍ଭ ଆଖି ଗୋ । ୨୫ ।
ଅଚଳା ପଦ୍ମଣ୍ଡେ ଦେଖ ବଟେ ନାରାୟଣ ।
ସର୍ବମଙ୍ଗଳାଙ୍କୁ ଦେଖ ସଙ୍କଟ ତାରଣ ।
ଯୋଗମାୟୀ ଗୋ ।
ଶଙ୍ଖ ଚକ୍ର ଧର ବେନି କାୟୀ ଗୋ । ୨୬ ।

ମୃକଣ୍ଡୁଋଷିଙ୍କ ଶିଷ୍ୟ ମାରକଣ୍ଡ ଋଷି ।
ବ୍ରହ୍ମାଣ୍ଡ ପ୍ରଳୟ କାଳେ ଯାଉଥିଲେ ଭାସି ।
ତାଙ୍କୁ ଅଣି ଗୋ ।
ବଟ୍ଟ ଗର୍ଭେ ଠାବ ଦେଲେ ପୁଣି ଗୋ । ୧୭ ।
ସେଖାଇ ଶାଳକୁ ଦେଖ ମହା ଶୋଭାକର ।
ସବୁ ଦେବାଦେବଙ୍କର ଅଟେ ମନୋହର ।
ସୀତା ଦେଖି ଗୋ ।
ହରଷ ହୋଇଲେ ଚନ୍ଦ୍ରମୁଖି ଗୋ । ୧୮ ।
ଏ ସ୍ନାନ ମଣ୍ଡପ ଦେଖ ଜନକ ଦୁଲଣ ।
ଶ୍ରୀହରି ଚରଣୁ ଗଙ୍ଗା ପଡ଼ୁଛ ଉଛୁଳ ।
ଭାଗ୍ୟବଳେ ଗୋ ।
ଦର୍ଶନ ମିଳନ୍ତ ଏତେକାଳେ ଗୋ । ୧୯ ।
ଗୃହାଣି ମଣ୍ଡପ ଗୃହଁ ଜନକ ଦୁହିତ ।
ଲକ୍ଷ୍ମୀ ଦେବୀ ରଥ ଗୃହଁ ଏଥୁଁ ଫେରଯାନ୍ତ ।
ବଡ଼ଦାଣ୍ଡ ଗୋ ।
ଯହିଁ ଲକ୍ଷ ଲକ୍ଷ ଲୋକ ଭୁଣ୍ଡ ଗୋ । ୨୦ ।
ବାଇଶିପାବଛୁ ଏତ କଇବଲ୍ୟ ସ୍ଥାନ ।
ଏହଠାରେ ରହ ସଖି କରବା ଦର୍ଶନ ।

ଧୀରେ ଧୀରେ ଗୋ ।
ଯାଇଁ ପ୍ରବେଶିତା ସିଂହଦ୍ୱାରେ ଗୋ । ୩୧ ।
ଦେଖ ରାମ ଅଭିଷେକ ବେଶେ ଅଧିକାର ।
ଅଯୋଧ୍ୟାରେ ହୋଇଥିଲେ ଯେହ୍ନେ ରଘୁବୀର ।
ପ୍ରାଣସଖି ଗୋ ।
ବାଇଶିପାବଚ୍ଛେ ଥାଅ ଦେଖି ଗୋ । ୩୨ ।
ବାଇଶି ପାବଚ୍ଛେ ଦେଖ କାଶୀ ବିଶ୍ୱନାଥ ।
ଛନ୍ନ ପାବଚ୍ଛରେ ରହୁ ଯୋଡ଼ିଛନ୍ତି ହସ୍ତ ।
ସୀତା ଦେଖି ଗୋ ।
ସାର୍ଥକ ହୋଇଲା ଆମ୍ଭ ଆଖି ଗୋ । ୩୩ ।
ସିଂହଦ୍ୱାର କାଟେ ରାମ ବାହାର ହୋଇଲେ ।
ଭଣେ ଜନାର୍ଦ୍ଦନ ସେ ଦକ୍ଷିଣ ମୁଖେ ଗଲେ ।
ରଘୁନାଥ ହେ ।
ସଙ୍ଗେ ସୀତା ସୁମିତ୍ରାଙ୍କ ସୁତ ହେ । ୩୪ ।
ଅଦୃଶ୍ୟରେ ଦୃଶ୍ୟପଣ ଭଣେଁଲି ଆପଣ ।
ମୋଠାରେ ସୁଦୟା କର ସୀତାଙ୍କରମଣ ।
ରଘୁପତି ହେ ।
ତୁମ୍ଭ ଶ୍ରୀ ଚରଣେ ରହୁ ମତି ହେ । ୩୫ ।

# ବେଢାପରିକ୍ରମା ।



ରାଗ ଢାଳୀ ।

ସମୁଦ୍ର ତଟରେ ଶ୍ରୀ ମହାକ୍ଷେତ୍ରରେ ଶଙ୍ଖନାଭିର ମଧ୍ୟରେ । ଶ୍ରୀ ନୀଳକନ୍ଦରେ ଅଛନ୍ତି ସହିରେ କର୍ଣ୍ଣିକେଭବ ଶୁଣ ନରେ । ୧ ଶଙ୍ଖଆକାରରେ ପଞ୍ଚମକ୍ରୋଶରେ ଅଟଇ ଯେ ମଧ୍ୟସ୍ଥଳୀ । ମାନବେ କେ ତାହା ନ ଭେଦବେ ଯାହା ଶିବ ନ ପାରନ୍ତି କଳି । ୨ । ବେଢ଼ାପରିକ୍ରମା ଏହାର ମହିମା ଶୁଣି ହୋଇବା ହରଷ । ଏହାକୁ ଶୁଣିଣ ଅଶେଷ ଦୂଷଣ ଶୀଘ୍ରେ ହୁଅଇ ବିନାଶ । ୩ । ଦୃଢ଼ ଦୃଢମତି କରିବା ଭକତ ବେଳେ କୃଷ୍ଣ ଆଶ୍ରେ କର । ଲଭିବ ମୁକତି ହେବ ମୋକ୍ଷଗତି ପ୍ରବେଶ ହରିମନ୍ଦିର । ୪ । ପ୍ରଥମେ ଦର୍ଶନ ପତିତପାବନ ସିଂହଦ୍ୱାରେ ଦେଖ ଯାଇଁ । ହାତଂଷ ପାବ-କ୍ଷେ କାଶିବିଶ୍ୱନାଥ ପୂର୍ଣ୍ଣ ବ୍ରହ୍ମରୂପ ଧାଇଁ । ୫ । ଶ୍ରୀ ଭୋଗ-ମଣ୍ଡପ ଦେଖି ଯତ୍ନ ପାପ ତହିଁ ମସ୍ତକ ଲଗାଅ । ଅଜ୍ଞାଣ ନାଥଙ୍କୁ ଶୁଦ୍ଧରେ ଦେଖନ୍ତୁ ବିଘ୍ନେଶ୍ୱର ପାଶେ ଯାଅ । ୬ । ବଟକୃଷ୍ଣ ଅଦ୍ଭ

ପଶ୍ଚିମା ବଧି ବଟମଙ୍ଗଳା ସେଠାରେ । ଅନନ୍ତ ଶୟନ ଶଯ୍ୟାକୁ
ଦେଖିଣ ଲଭ୍ୟକର ଚନ୍ଦ୍ରୋପରେ । ୭ । କ୍ଷେତ୍ରପାଳ ଦେଖି ସେ
ସ୍ଥାନରୁ ଆସି ନୃସିଂହନାଥଙ୍କ ଯାଏ । ବଟପକ୍ଷ ଥରେ ଦେଖ
ସୁଚକ୍ଷୁରେ ନରରେ ପୁରଣ ହୁଏ । ୮ । ତହିଁର ଅନ୍ତରେ
ରୋହିଣୀ କୁଣ୍ଡରେ କାକପକ୍ଷୀ ଚତୁର୍ଭୁଜ । ତଥିପରେ ଚକ୍ର ଦେଖ
ହୋଇ ବକ୍ର ପୂର୍ବ କଥାଯାକ ହେଜ । ୯ । ଶୁଭରେ ହମ୍ଭେ
ଶ୍ରୀ କ୍ଷେତ୍ର ଭୂପାଳେ ସଦେଭ୍ୟ ମଣ୍ଡନ୍ତ ଗୁହାଯ । ଏହାଙ୍କ ହୃଦୟରେ
ମହାଦୁର୍ଗା ଖରେ ମଂସାସୁର ଦର୍ପ ହତ । ୧୦ । ନନ୍ଦର ଯଶୋଦା
କୃଷ୍ଣମୂର୍ତ୍ତି ଗଦା ଗଦାହୋଇ ବସିଛନ୍ତି । ସରସ୍ୱତୀ ନୀଳମାଧବ
ମକଳ ବେଗାବାହଳା ମୂରତ । ୧୧ । ଦେବୀ ସରସ୍ୱତୀ ପ୍ରସନ୍ନ
ହୁଅନ୍ତି ତାଙ୍କୁ ବଲକଧ ଦେଖ । ମହାଲକ୍ଷ୍ମୀ ହଲେ କୁବେରର
ତୁଲେ ଧନ ଦେଇ କରେ ସୁଖ । ୧୨ । ଲକ୍ଷ୍ମୀଙ୍କ ମୋହନେ
ବସିଲବ କ୍ଷଣେ ଶ୍ରୀ ମହାମନ୍ତ୍ର ଉଚ୍ଚାନ । ସେଠାରୁ ଉଠିବ ପ୍ରଲମ୍ବ
କମ୍ବଳ ହନୁମାନେ ନିବେଦନ । ୧୩ । ଗଙ୍ଗାହୃ ଚିଧାର
ମୋକ୍ଷଦ୍ୱାର ନର ପାଦୁକକୁଣ୍ଡ ଅଟଇ । ତହିଁରୁ ଜଣିବା ମାତ୍ରକେ
ନେବଟୀ ଅଂଶେଷ ପାପ ହରଇ । ୧୪ । ଏହା ଶେଷନାଗ
ମସ୍ତକେ ସଂଯୋଗ କପୋଳେ କଉବ ଚଟା । ଏହା ଦେଖିଲରୁ
ଦଣ୍ଡଧର ଦୂରୁ ମୃଢ କରେ ଅପ୍ରମିତା । ୧୫ । ଆଦଚ୍ୟ ଉଦୟ

ସେଠାରେ ଦେଖିବ ଈଶାଣେ ପାତାଳେଶ୍ୱର । ଉତ୍ତରେ ଉତ୍ତରା-
ଯ୍ୟଣୀ ଦିଁପି ତୋରା ସୁବର୍ଣ୍ଣକୂପ ପାଖର । ୧୭ । ଶୀତଳା ସନ୍ନିତ
ରୁଦ୍ରଗଣ ଦେଖ ସେଠାରେ ବସିଅଛନ୍ତି । ବେଳଙ୍କର ବର ବଜାୟୁ
ଉପର ଧବଳ କଳା ମୂରତ । ପାଦପଦ୍ମଚିହ୍ନ ଦେଖିକର ବର୍ଣ୍ଣି
ପଞ୍ଚତୀର୍ଥ ଲକ୍ଷ୍ମୀକର । ମହୋଦଧି ବଟ ପାଦପଦ୍ମ ଚକ୍ର ମହାଲକ୍ଷ୍ମୀଙ୍କ
ମନ୍ଦର । ୧୮ । ସେ ପଞ୍ଚତୀର୍ଥରେ ସ୍ନାନ କଲେ ଖେଦର କାଳଭୟ
ନ ଲାଗଇ । ଚଇତନ୍ୟ ରୂପ ସେସ୍ଥାନରେ ପ୍ରାପ୍ତ ବ୍ରହ୍ମହତ୍ୟା
ଦୋଷ ଯାଇଁ । ୧୯ । ବେତା ବୁଲିକର ସତ୍ୟବାଟେ ଗଳି
କଷ୍ଟମାନ୍କୁ ଦୂର କର । ଶ୍ରୀ ଗୁରୁଚରଣ କରିବ ସ୍ମରଣ ଯେପାରୁ
ହୋଇବ ପାର । ୨୦ । ଏଥୁଁ ଅନନ୍ତରେ ଜଗମୋହନରେ
ଦେଖିବ ବେଳ ଖିଲଙ୍କି । ବୀରପେ ଘୋଡାରେ ଚଢ଼ିଣ ସହିରେ
କାଞ୍ଚିକାବେଳ ପାଇଁଙ୍କି । ୨୧ । ଦଧି ଖାଉଥିଲେ ଗୋପିଲୁଣୀ
ମେଳେ ବସ୍ତ୍ରମୁଦ୍ରା ବନ୍ଧା ଦେଇ । କର ପ୍ରଦାକ୍ଷଣ
ଗୋପାଳୁଣୀ ଗଣ ଯେ ମୁଦ୍ରିକାକୁ ନେଅଇ । ୨୨ ।
ଶିବବ୍ରହ୍ମା ନର ସ୍ତମ୍ଭରେତ କରଯୋଡି ହୋଇଛନ୍ତି ଉଭା ।
ଗରୁଡ଼ ସ୍ତମ୍ଭରେ ଗରମାନ କରେ ଦେଖଛ ଅଷ୍ଟପିଏ ପ୍ରଭା । ୨୩
ତେଠାରେ ଶୋଭନ-ଦଣ୍ଡର ଢଳମ୍ବ ଜଗୁଛ ପ୍ରେମ ସ୍ନେହରେ ।
କାକୁସ୍ଥରେ କର ନବେଶିବ ଶିର ଦ୍ୱାରପାଳଙ୍କ ଆଗରେ । ୨୪

ଚନ୍ଦନ ଅର୍ଗଳ ଠାରେ ଯାଇମିଳ ନରେଶି ଗହ୍ଵଂ ନୟନ ।
ସ୍ତମ୍ଭରେ ମର୍କତ କନକ ମଣ୍ଡପ ତହିଁମଧ୍ୟେ ଭଗବାନ । ୨୫ । ରତ୍ନ
ସିଂହାସନେ ବସି ଏକଧାନେ ଚତୁର୍ଦ୍ଧା ମୂରତ ଧରି । ଜୟ ବଳ-
ଦେବ ଜୟ ବାସୁଦେବ ଜୟ ସୁଭଦ୍ରା ସୁନ୍ଦରୀ । ୨୬ । ଜୟ ସୁଦର୍ଶନ
ମଦନମୋହନ ଜୟ ବଳରାମ ହର । ଏକକରେ ହଳ ଦ୍ଵିତୀୟେ
ମୂଷଳ ଅରୁଣ ନୟନ ଯାର । ୨୭ । ଏକକରେ ଦର ଚକ୍ର ଅନ୍ୟ-
କରେ ଅନ୍ୟ କରେ ଗଦା ଶୋଭେ । ଚତୁର୍ଥ କରେଣ ପଦ୍ମ
ଧରି ପୁଣ ଭକ୍ତଜନ ମନ ମୋହେ । ୨୮ । ସାଧୁ ଅବକାଶ
ସେବକାଦ୍ଦ ଦାସ ଯୋଗକୁ ସଜ୍ଜା ଥୋଇଲେ । ନିୟୋଗୀୟମାନେ
ଆପଣାର ମନେ ପୂଜା ଘଣ୍ଟା ବଜାଇଲେ । ୨୯ । ଘଣ୍ଟାହର
ଧ୍ଵଜ ଶୁଭେ ପୁରନ୍ଦର ବ୍ରହ୍ମାଦିଙ୍କ ଦେବ ଘେନ । କୃଷ୍ଣ ଚରଣକୁ ଧୂପ
ଖଟିବାକୁ ଇନ୍ଦ୍ରଆଦି ସୁର ମୁନି । ୩୦ । ସ୍ତମ୍ଭରେ ଅମ୍ବରେ ହୁଏ
ବେଦବାଦ ବାଜନ୍ତ ପାଠ ପଢନ୍ତି । ରୁଦ୍ର ଯେ ପ୍ରତାପ ଖଟେ ଧୂପ
ଦୀପ ଷୋଡଶୋପଚାର ଯୋଗ ଘେନ । ୩୧ । ଅଷ୍ଟମଣିଆ ସ୍ଵର ଘେନଣ
ସତ୍ଵର ମହାସୁଆରେ ଆସନ୍ତି । ଛପନଅ ଭୋଗ ରୂପରେ ସଂଯୋଗ
ସ୍ତମ୍ଭରେ ଯନ୍ତ୍ର କରନ୍ତି । ୩୨ । ଷଷ୍ଠାଦଶରୂପେ ପୂଜାର ସ୍ଵରୂପ
ନାନାବିଧ ରୂପ ଧରି । ଅଙ୍ଗନ୍ୟାସ କର ନ୍ୟାସମାନଙ୍କର ବାକ୍ୟ
ମାନ ଉପଗ୍ରହ । ୩୩ । ନଇବେଦ୍ୟ ଧୂପ ଚନ୍ଦ୍ରଧର ଦୀପ ବ୍ରହ୍ମ

ରୂପକୁ ଚହ୍ନନ୍ତି । ଚହ୍ନିଲ ମାତ୍ରକେ ପ୍ରେମବ୍ରହ୍ମରୂପେ ଚକ୍ଷୁରେ
ଦୃଶ୍ୟ ହୁଅନ୍ତି । ୩୪ । ଦିବ୍ୟ ଉପାସକ ମହାଲକ୍ଷ୍ମୀ ପାକ ଅମୃତ
ମନୋହର ଭୋଗ । ତାମ୍ବୁଲ କର୍ପୂର ବଡ଼ଅ ବାହାର ଭୋଗ
ଆଚବନ ପାଉ । ୩୫ । କର୍ପୂର ଅଣେବା ଧୂପକୁ ପାଉବା ଅଳଥ
କହିବା ଶେଷ । ଭକ୍ତ ଯେଉଁନରେ ସେବନ୍ତି ହାମୂରେ ଦେଖେ
ବଳରାମ ଦାସ । ୩୬ । ହାଟ କୈବଲ୍ୟର ବସେ ନରନ୍ତର
ଏକକାର ସବୁ ଦେଖ । ଶ୍ରୀ ମହାପ୍ରସାଦ ଅମ୍ଭର ଅଭେଦ
ଭବ ଭୟକୁ ଉପେକ୍ଷ । ୩୭ । ସନ୍ଧ୍ୟାଧୂପ ଆଦ୍ୟ ବେଳେ ଦେଖ
ମଧ ହୁଏ ପାଞ୍ଚ ଅବକାଶ । ଗର୍ଭଗୃହ ପଙ୍କ୍ତିରେ ଥାଇ ଦେଖ
ନରେ କାହୁ ସୁଫଳ ପ୍ରକାଶ । ୩୮ । ସନ୍ଧ୍ୟା ଧୂପବେଳେ ସଉ-
ଲଗି ଭାଳେ ଟଳ ଯନ୍ତ୍ରାମାଳମାନ । ଆଭରଣମାନ ଶ୍ରୀ ଅଙ୍ଗୁ
କାଢ଼ିଣ ଲାଗି ପାଇ ଚନ୍ଦ୍ରସମ । ୩୯ । ଏଥୁଅନନ୍ତରେ ଜଗ-
ନ୍ନାଥ ଖରେ ଚନ୍ଦନ ଲାଗି ହୁଅନ୍ତି । ବଡ଼ସିଂହାରରେ ବେଶ
ଉଦ୍ଧାରରେ ପଣ୍ଡାଙ୍କେ କରନ୍ତି । ୪୦ । ଚକାବଇଠିରେ
ଖଞ୍ଜନ୍ତି ସହିରେ ଖିରୋଦ୍ର ଶ୍ୱେତ ଅମ୍ବର । ପାଣିର ଯେ ଦାସ
କରନ୍ତି ସୁବେଶ ଚତ୍ତ୍ରେ ହୋଇ ତତପର । ୪୧ । ବାସୋପରେ
ବାନ୍ଧ କରନ୍ତି ସୁବେଶ ଡ଼ମ୍ବରୁ ମଣ୍ଡା କଟିରେ । ସେ ପୀତବସନ
ତହୁଁ ଉପରଣୀ ବିପୁଳ ଭୁଜ ଉପରେ । ୪୨ । ସନ୍ଧ୍ୟରେଖ ହିନ

ଶୋଭଇ ବସନ କର୍ଣ୍ଣେ ମକର କୁଣ୍ଡଳ । ନୂତନ ଲଳିତ ରତନେ
ଜଡ଼ିତ ଶୋଭିତ ଚିତା ଉଜ୍ଜ୍ୱଳ ।୪୩। ନାନା କୁସୁମରେ ତ୍ରିବେଣୀ
ଚୂଳରେ ଯତ୍ନେ କରି ସଜାଡ଼ନ୍ତି । ଇମ୍ଭୂନଦେ ଚିତା ଉପରେ
ଶୋଭିତା ଧନ୍ୟ ରୂପ ଅଳକାପନ୍ତି । ୪୪ । କୋଟି କାଜନ୍ଦୀର
ପରାଏ ସୁନ୍ଦର କଳା ଶ୍ରୀମୁଖମଣ୍ଡଳ । ଚଞ୍ଚଳ ପଲ୍ଲଶ ପରାଏ
ପ୍ରକାଶ କରନ୍ତି ନେତ୍ରଯୁଗଳ । ୪୫ । ନାସାରେ ବସଣୀ ଶୋ-
ଭନ୍ତି ପୁଣି ମନୋହର କର୍ଣ୍ଣାଞ୍ଚଳ । ବତୁଳ ଭୁଜରେ ଲମ୍ବି ଛୁ
ରୁଚିରେ ଦିବ୍ୟ କରଣ୍ଡଅମାଳ । ୪୬ । ଅଧର ଛବିକୁ
ଉପମା ଦେବାକୁ ନାହିଁ ଆଉ ତ୍ରିଭୁବନ । ସୁବାଳନାଦ ଦ-
କାଳନ୍ଦନ୍ତୁଦେ କି ଖଷଇ ତା ପ୍ରତେ ଦେନ ! ୪୭ । ଏ ବଜ
ସିଂହାର ଦେଖନ୍ତେ ମୁନିର ଅଟଇ ଅତି ଦୁର୍ଲ୍ଲଭ । ଚର୍ମ୍ମପୋଲା
ନେତ୍ର ହୁଅଇ ଦେଖି ଦେହିଣ କରପଲ୍ଲବ । ୪୮ । ଏହିମ-
ମଧ୍ୟରେ ସୁଭଙ୍କର ନରେ ଅଶେଷ ଦୁଃଖତ ଯାଉ । କହିଲେ
ଜାଣାଣା ଗୁହ୍ୟାଖ ଶ୍ରବଣ ବସନ୍ତି ନ ରହେ ଆଉ । ୪୯ । ବେଶ
ରାଖ ଖେଗ ହୁଅନ୍ତେ ସଂଯୋଗ ବେଶକାରୀଏ ଅନ୍ତର । ଖେଗ
ଦେବା ଅନ୍ତେ ପୁଷ୍ପାଞ୍ଜଳି ହସ୍ତେ ଦେଖନ୍ତି ଯେ ସୁରନର । ୫୦ ।
ପୁଷ୍ପାଞ୍ଜଳି ପରେ ସିଂହାସନ ତଳେ ରତ୍ନପଲଙ୍କ ପଡ଼ଇ । ସୁବର୍ଣ୍ଣ-

ଝଂଗାରେ ଜଳ ସୁଗନ୍ଧରେ ସେଠାରେ ରଖନ୍ତି ନେଇ । ୫୧ ।
କବାଟ ପକାନ୍ତି ଦେଉଳ ଶୋଧନ୍ତି ଦେବଭାମାନେ ମେଲଣି ।
ରତ୍ନସିଂହାସନୁ ସୁକୁମାର ତନୁ ବସନ୍ତି ପଲଙ୍କରେ ପୁଣି । ୫୨ ।
ନୀଳକଣ୍ଠ କାଣ କପାଳ ଲୋଚନ ଯମେଶ୍ୱର ହଖହ୍ୱର । ଲୋକ-
ନାଥ ମାର୍କଣ୍ଡ ବେଲେଶ୍ୱର ଯାନ୍ତି ଆପଣା ମନ୍ଦିର । ୫୩ ।
ମାର୍କଣ୍ଡ ଶ୍ୱେତ-ଗଙ୍ଗା ଚକ୍ରତୀର୍ଥ ଆବର ଇନ୍ଦ୍ରଦ୍ୟୁମ୍ନ । ଶୁଣ
ହେ ସୁଜନରେ ଏ ତୀର୍ଥମାନରେ ନଷ୍ଟେ କରିବ ସ୍ନାହାନ ।୫୪ ।
ସ୍ୱର୍ଗର ଦ୍ୱାରରେ ମହୋଦଧିଠାରେ ସ୍ନାନ କର ଅନୁମଧ ।
ସୁରଗଣମାନେ ବାଞ୍ଛା ଅନୁକ୍ଷଣେ ଭାଗ୍ୟ ହୋଇବ ଆମ୍ଭ ।୫୫।
ଜାନମ ଅମୃତ ହୋଇବ ମର୍ତ୍ତ୍ୟର କୈବଲ୍ୟ କଥରୁଁ ସେବା ।
ତୀର୍ଥମାନଙ୍କରେ ସ୍ନାହାନ ସହୃରେ ହୋଇବ ଏଭ୍ରାଗ୍ୟ ଅବା ।୫୬।
ନରନ୍ମରେ ନାମ କଥରୁଁ କୀର୍ତ୍ତନ ଦଣ୍ଡେ ଷଣେ ଏକଧାତ ।
ମନ ଦେଇକଥ ଭକ୍ତରୁଁ ଶ୍ରୀହରି ବଷସ୍ୱାପଥରୁ ଏଡ଼ି । ୫୭ ।
ଏ କଥା ସୁଜନେ ଶୁଣ ସାବଧାନେ ଦେହାନ୍ତରେ ନ ମିଳଇ ।
ମନ କର୍ତ୍ତବ୍ୟରେ ଶୁଣିଲେ ସହୃରେ ବଇକୁଣ୍ଠ ପ୍ରାପ୍ତି ହୋଇ ।୫୮
ନ କରିବ ହେଳା ଶ୍ୱେତପଦ୍ମତୋଳା ଭକ୍ତ ଏ କରୁଣାନିଧି ।
ଦୃଷ୍ଟି କର ମନେ ହେଉଛ ଯତନେ ସର୍ବକାର୍ଯ୍ୟ ହୁଏ ସିଦ୍ଧି ।୫୯

ଘୋର ଅନ୍ଧକାର ଏ ଭବସାଗର ପାର ହେବାକୁ ନଉକା ।
ଭକ୍ତ ମନଦେଇ ଦାରୁବ୍ରହ୍ମ ପାଇଁ ଲକ୍ଷ ଦିଷି କର ଏକା ।୬୦।
କ୍ଷେତ୍ର ବର୍ଣ୍ଣନରେ ଲେଖିଲି ଯୁଗରେ ମୋର ନ ଧରିବ ଦୋଷ ।
ସଂଦ୍ରମଣ ମାତ୍ର ଜ୍ଞାନଲି ବଖାଣି କହେ ବଳରାମଦାସ ।୬୧।

ସମାପ୍ତ ।

—o○o—

Arunodoy Press Dewan Bazar Cuttack.